ପ୍ରେମ କ ଯଶାଳେ ଅଛୁ—ରାଧା କୃଷ୍ଣ ପରି ଲଭ,
ସେ ଧନ ଅନ୍ୟର ଘରେ ତହାଇଲ ସେ ତନୁଁ ସରୁ ଯାଉ'ଛ ।
ଯେବେ ଯା ବୋଲନ୍ତି ପ୍ରେମ—ଅଟଇ ତା ଭଣ୍ଡପଣ,
ଅଗେ ସୁଖକଥା ପଛେ ମଥାବ୍ୟଥା ଶେଷକୁ ନ ଥାଏ କଛ ॥

ରସ ।—(ଦୀର୍ଘନିଶ୍ୱାସ ତ୍ୟାଗ କରି) ସତ ଗୋ ସତ !

ଦ୍ୱର ।—ଆଉ,

ସେ ଭଳ ପୁରୁଷ ହୋଇବ କଏ, ସ୍ତ୍ରୀର ପାଦ ଧରଇ ମସ୍ତକେ ଥଏ ।
ଶ୍ରୀକୃଷ୍ଣ ରାଧାର ରାଧା ଶ୍ରୀକୃଷ୍ଣର ତାଙ୍କୁ ଭଜାଭଜନ କରିବ କିଏ ॥

ରସ ।—ଅହା ! ତାଙ୍କ ପରି କିଏ ହବ !

ଦ୍ୱର ।—ପୁଣି,

ଦିନେ ରାଧାଙ୍କର ଭେଟ ନ ପାଇ, ଶ୍ରୀକୃଷ୍ଣ ଅତ୍ୟନ୍ତ ହୋଇଲେ ବାଇ,
କେତେ ବଂଶୀସ୍ୱନ କଲେ ଯେଣୁ ଯନ ଭେବେ ହେଁ ନ ଦଲେ ରାଧାଙ୍କ ରଇ ।
ତହୁଁ, ଦିବାଳୁତା ଶଶି ତନ୍ଦ୍ରାରେ ଧରି, ନପଡାଲେ ଦୃଢ଼େ ବନ୍ଧନ କରି,
ବେଳ ଦେଖିବେଳେ ଦୂତିକା ସେ କାଳେ ଓଟାରି ଧଇଲା ପଛରୁ ଯାଇ ।
ଫାଟିଗଲା ଗଳେ ଚନ୍ଦ୍ରବଦନ, ଜ ସୁନ୍ଦରୀ ଅଛି କହି ବଚନ,
ଏତେକ କଥାକୁ ଏତେ କଥାହିଁ ଏ ବୋଇଲା ଦୂତିକା ଶ୍ରୀମୁଖ ଚାହିଁ ।
ଜ୍ଞାନବାନ ଅଟ ଶ୍ରୀକୃଷ୍ଣ ଏଡ଼େ, ଅଳପେ ମୂରୁଖ ହୋଇଲ କେଡ଼େ,
ରାଧିକା ଏ କଥା ଶୁଣିଲା କାଳରେ କେତେ ବା ଗଞ୍ଜନା ଗଞ୍ଜିବ ନାହିଁ ॥

ରସ ।—ଭଲ କଥାଏ ପକେଇଲ ମାତା !

ଦ୍ୱର ।—ତହୁଁ

କହିଲେ ଶ୍ରୀକୃଷ୍ଣ ମନ୍ଦହାସେ, ଶ କହ ଦୂତିକା ରାଧିକା ପାଶେ,
ପରାଣରାଧିକା ବନ୍ଧନେ ପରାଣ ଛେନ୍ଦୁଥିଲି ମୁହିଁ ଭ୍ରମେ ।
ମୋର ପରାଣ ଯେ ତାର ପରାଣ, ଏ ଗଲେ ସେ ଯିବ ନ ହେବ ଆନ,
ବୁଝି ନ ପାରିଲି ଠିକେ ହୁଡ଼ିଗଲି ବୁଦ୍ଧି ବୁଦ୍ଧି ବିକାଶରେ ।
ଚତୁର ଦୂତିକା ଏମନ୍ତ କାଳରେ ଅଢ଼େ ଦେଲା ଅଖିଠାରି ।
ବୋଇଲେ ଶ୍ରୀକୃଷ୍ଣ କେବଣ ପରୀକ୍ଷା ଏ ହେଲା ଧନ୍ୟ ରୁ ଜାଉ ।
ରାଧିକା ବୃନ୍ଦାର ଏମନ କାଳରେ କାନ୍ଦାଇଲେ ଭରୁଅନ୍ତ !
ତହୁଁ, ଅନନ୍ଦରେ ଖେଳରେ ଖେଳ ହେଲେ ସବେ—ପ୍ରେମ କେ ଭଲ ଏଠାରୁ !

(ଗୀତ)

ରାଗିଣୀ ପୂରବୀ । ତାଳ ଏକତାଳୀ ।

ଅରେ ରସଲତା ! କେବେ ନ ସରିବ ତୋର ଚିତ୍ତ ବ୍ୟଥା ।
ଏ ଯେ ସଂସାର-ସାର ସବୁ ସରିଗଲା, ସ୍ୱର୍ଗ-ସ୍ୱଭାଗେ ନର୍କରାଜ ରାଜ୍ୟ କଲା;
କଳିକାଳକୁ ପାପ ଦିଏ ଯା ମନସ୍ତାପ କଳିବ କେ ତାକୁ ଭୁଲ କରି —
ଅରେ ରସନାରୀ ! ତୋତେ ଦୁଃଖଗଞ୍ଜନା ଯା ଦେଲା ସାରି । ୧ ।
ଦିବ୍ୟ ସୁଧାପାନ ଛାଡି ଲୋକେ, ବିଷପାନେ ମାତିଲେ ଥୋକେ ଥୋକେ
ଛାଡି ଗଲାଣି କୁଳ-ଧର୍ମ-ଆଚାର-ମୂଳ ଫେରି ପଡିଲାଣି ପାପରେଖା —
ଅରେ ରସଲେଖା ! ଲୋକ କପାଳକୁ ସଦା ଦୁଃଖ ଦେଖା । ୨ ।
ଏବେ, ସନ୍ତାପ ସାଗରେ ସନ୍ତରଣ ବିନା ଗତି ନାହିଁ ତୋହର ଭବେ
ଆନ ।
ଲୋଡିଥିଲୁ ତୁ ଯାକୁ ଭୁଲିବା ହେବ ତାକୁ ଭୁଲିଲାଣି ସେ
ତୋତେ ଥିର କରି —
ଅରେ ଯୀଣୋଦରି ! ଡାକ ଜଗତପାତାଙ୍କୁ ଝୁରି ମରି । ୩ ।

ରସ ।—( ଦୀର୍ଘନିଃଶ୍ୱାସ ତ୍ୟାଗ କରି ) ଏକା ସେଇଆ — ଭଗବାନ୍ ଏକା ମୋ ଭରସା !

ହରି ।— ମଣିଷର ଆଉ ଗତି କି ଅଛି — ସବୁ ଭଗବାନଙ୍କ ମାୟା — ସବୁ ଭଗବାନଙ୍କ ଲୀଳା ।— କି ଗୋ ଯମୁନା !

[ ଖଣ୍ଡିଏ ଛବି ଘେନି ଯମୁନାର ପ୍ରବେଶ ।

ହାତରେ କଣ କି ?

ରସ ।— ତାହୁଣ୍ଡି । ମୁଁ ଯା ଛାଣ୍ଡେଇ ନ ପକେଇ ରଖିଥିଲି ମୋତେ ଶଏଥର ତା ଦେଖେଇ ବୁଲୁଚ ।

ଯମୁ ।— ମାଲୋ ଏତେ ରୋଷ କାହିଁକି — କଣ ହେଇଗଲା ସେଇଠ ? ଯା ଦବାର ତା ତ ହେଇଚି — ଯାକୁ ଛାଣ୍ଡେଇ ପକେଇଥିଲେ କଣ ହେଇଥାନ୍ତା ?

ହର ।—ଜଣ ସେଥ୍ୟା କହ ନା—ସେଇଠି ବସ । ( ଖଣ୍ଡିଏ ପ୍ରସ୍ତର
ନିର୍ଦ୍ଦେଶ ) ।

ଯମୁ ।—( ବସି ) ଦେଖ କଣ । ( ହରଦାସୀକି ଛବି ପ୍ରଦାନ ) ।

ରସ ।—କିସ କହୁବ ବେଇଲ ! ଭୁ ମନେ କରୁ ସବୁ ରଙ୍ଗ—ମୋର
ତା ଦେଖିଣ ବେଲକୁ ଅଙ୍ଗ ଜଳଯାଏ !

ଯମୁ ।— ମାଲୋ—ଏଇ କଥାକୁ ମୁହଁଟା ଏଡ଼େ ଭାରି କରି ଦଉଚ—
ହଅ ଗୋ ମାତା !

ହର ।—ରହ ରହ ମ, ଏ କାହା ଛବି ?

ଯମୁ ।— କହୁବ ସେ ପାପକଥା । ଆମ ଗୁଣବାନ ପଣ୍ଡାଙ୍କ
ଟିଏ ରଖିଚନ୍ତି, ମାଇପକୁ ଦେଖେଇବା ପାଇଁ ତାର ଗୋଟାଏ
ଛପା ଉଠାଇ ଆଣିଥିଲେ ।

ହର ।—( ଛବୀ ଦଂଶନ କରି ) କଅଣ ! ଦାସୀଟାର ଛବି
ଦେଖେଇବା ପାଇଁ ମାଇପକଭକ ଆଣିଥିଲା ! ଅଭ୍ ହବ
ନାହିଁ !—ଅଲୋ ଏ ଋଷଟା କଣ ସୁନ୍ଦର ଦୁଗୁଚ—ଅଲୋ
ସେ ଅମ ବୋହୂର୍ ଚାଣିଥଙ୍କୁଠିକ ସର ହବ ନା ଅତ୍ତଗ ?

ଯମୁ ।—ତୁମେ ଦେଖ, ମୋତେ ପଶ୍ଚରୁଚ କାହିଁପେଇଁ । ଗୋଟାଏ
ଗୋଟାଏ ଲୋକଙ୍କ ପରକୁତ--କହୁବା କାଥକୁ !

ହର ।—ଛି ! ଛି ! --ଯମୁନା ! ଏ ଛବି ଅଙ୍କା ହେଲା କେମିତ ?
ଏ ସବକୁ ସଢ଼ ଗୋଟିଏ ଭଲ ପର ଦୁଚ୍ଛିଚ ।

ଯମୁ ।—ସେ କଲରେ ଛପି କେଉଁଥି ମ ।

ହର ।—ହିଁ କଲ ମୋହୁଲେ ଫେର ଏମନ୍ତ ଅଙ୍କିବ କଏ ?
ସରକାର କେତେ ପରକାର କଲ କଲାଣି—ଖାଲି ଜୀବଦାନ
ଦେଇପାରୁ ନାହିଁ ।

ଯମୁ ।—ହାତରେ ଫେର କଏ ଅଙ୍କିବ ?—ହଅ ହଅ ସେ କାହ-
ଣି । ( ଛବି ନେଇ, ଅଞ୍ଚଲେ ରସମଞ୍ଜରୀର ଲୁହ ପୋଛୁ

ଦେଉଁଦେଉଁ ) ଛି ବେଲ ! କେଉଁଠେ କାନ୍ଦୁଚ । ଦେଖଟା କାନ୍ଦି
କାନ୍ଦି ସିଝିଗଲାଣି—ସୂନାର ଗଛଟା ଯେମନ୍ତେ ଝାଉଁଳି
ଯାଉଚ !

ଦୟ ।—( ଆପଣା ଲୁହ ପୋଛି ) ଆହା ! !—

ଯମୁ ।—( ଆପଣା ଲୁହ ପୋଛି ରସମଞ୍ଜରୀର ଲୁହ ପୋଛି
ଦେଇ ) ସେ କ ବେଲ ! କପାଳରେ ଦୁଃଖ ଅଛି ବୋଲି
କଣ ସଂସାରର ସବୁକଥାକୁ ତୁଚ୍ଛ କରୁଚ ?

ରସ ।—ବେଲ ! ସଂସାରରେ ମୋର ଆଉ କଉଁ କଥା ଅଛି !
ମୋ ଅବସ୍ଥାରେ ବଞ୍ଚିବା କ ସୁଖର କଥା !—ଫୁଲଗଛଟିରେ
ପାଣି ଦେଲେ ସେ ବଞ୍ଚେ ନା ଶୁଖିଲା ଭୂଇଁରେ ଶୃଙ୍ଖପାଖର
ଗଛ ପାଇଁ ବଞ୍ଚେ । ମୋର ଅଛି କଣ ମୁଁ ବଞ୍ଚିବ ! ( କ୍ରନ୍ଦନ ) ।

ଦୟ ଓ ଯମୁ ।—( ଉଠିଯାଇ ) ଛି ଛି ତୁନ ହୁଅ ତୁନ ହୁଅ ।
( ଲୁହ ପୋଛିଦେଇ ମୁଖରେ ଜଳ ଦେବାର ) ।

[ କନକଲତାଙ୍କର ପ୍ରବେଶ ଓ ସମସ୍ତେ ତୁନତାନ
ହୋଇ ଛିଡ଼ା ହେବାର ।

କନକ ।—ଯମୁନ ! ବୋହୂ ଅଛି କ ଏଠି ?—ଘଡ଼ିଟା, କାକର
ପଡ଼ୁଚ, ଆସ ମା ମୋ ସଙ୍ଗେ ଆସ ।—ଆଉ କଏ—ମାଡା କ ?

ଦୟ ।—ହ ଗୋ !

କନ ।—ତୁମର ପାଇଁ ବୋହୂ ଏତେବେଳଯାଏ ଏଠି ବସିଯାଇଚ,
—ଆଉ ତା ମନ ଲାଗିବ କଉଁଠି ? ଆସ ମା କାକର ପଡ଼
ନସମ ହବ ।—ଯମୁନ, ସିବୁ ନା ଆ ।

ଯମୁ ।—ମୁଁ ଟିକଏ ଛିଡ଼ି ଯାଉଚ ।

ରସ ।—( ପ୍ରସ୍ଥାନ ) ।

କନ ।—ହଉ ଅ, ଆଉ କାକରଟାରେ ବସ ନା । ( ରସମଞ୍ଜରୀର
ପଶ୍ଚାତ୍ ପ୍ରସ୍ଥାନ ) ।

ଦଉ ।—କେତେ ଯନ୍ତ୍ରଣା ବୋହୂକୁ ଆସି ଘଟିଚି !

ଯମୁ ।— ଆଉ ତା' କାହିଁକି କହୁଚ ? ପୁଣି ଆପଣ ଭାଳ ଘଟିକି ଆସିଥିଲେ ଜାଣ ?

ଦଉ ।—ହଁ ଶୁଣିଥିଲି—ସେହି ଗଛ ଆଉଁ ଗୁଳିଗଳାଣି ?—ସର-କାରୀ କାମ କରୁ ଥିବ ।

ଯମୁ ।—କି ସରକାରୀ କାମ ମ ? ସେ ସାହେବ ପୁଅଟିଏ କଣ ଘଟିକି ଆସି ନାହିଁ ?

ଦଉ ।—ହଁ—ସେ—ଏ—କଣ ତା ନା ଅସୁ ନାହିଁ ।

ଯମୁ ।—ତାର କି ସରକାରୀ କାମ ନାହିଁ ? ସେ ଅଇଲା କେମତେ ଯିବ କେମତେ କେହି ଜାଣିବ ? ସେ ଅମର ଅଁସିକର ଖରଖର ଫରଫର—କଣା ଖାଇଚ କାହାକୁ ମାନିବାକୁ ନାହିଁ !—ବୋହୂର ପିଠି ଦେଖିଚ ?

ଦଉ ।—( ସ୍ୱଗତେ ) କଣ—କଣ ମ ?

ଯମୁ ।—ଆଉ କେବେ କଣ—ବୋହୂର ପିଠିର ଅଗେ ଅବସ୍ଥା ଅଛି ? ପଲେ ମାଉଁସ ଉଠି ଯାଇଚ ପରା !

ଦଉ ।—କଣ ମାଡ଼ଖାଇ ?

ଯମୁ ।—ଯୋଡାରେ ।

ଦଉ ।—( ଜିହ୍ୱା ଦଂଶନ କରୁ ) ଅଉ କହ ନାହିଁ । ଛୁ ଛୁ କାଳ ସଇଲା !

ଯମୁ ।—ଗୁଣମଣି ଏ ଛବ ଖଣ୍ଡିକ ଅଣି ବୋଲକୁ ଦେଖେଇ କହିଲେ ଦେଖନା ଏ କେମନ୍ତ ସୁନ୍ଦର ରୂପ ! ବୋଲ ତ ଅଗରୁ ଶୁଣିଥିଲା କହିଲା ଏଇଟା ମୋର ସଉତୁଣୀ ପରା ।—ଅଉ କହୁକହୁ ଯିବ କୁଅଡେ—ମାତ ଶବଦରେ ତ ଘର ଭାଙ୍ଗି ପଡ଼ିଲା । ମୁଁ ଉଠିଯାଇ ଗୁଣମଣିକି ଟାଣିଅଣି କାହାରେ ପକେଇ ଦେଖେଁ ଯେ ବୋଲ ମୂର୍ଚ୍ଛା ଯାଇ ପଡ଼ିଚି ।—କଣ

ହହବ—ବଡଲୋକଘର ଝିଅକୁ ଛନ୍ଦ ଦେଇ ସାଥିରାଣୀ ଆମର ବନ୍ଧୁଙ୍କ ହଟହଟା ହେଲେଣି ।—ଟିକିଏ ଗଲାଠୁଁ ଯନ୍ତୁଁ ଜଣା ଜମିଗଲା ଗୁଣମଣିର ଯୋଡାଛଡା ନେଇ ଚାଲ୍ କଲେ—ଯାହା ନା କଣ ?

ହର ।—ଛିଛି ! ଏ ଭାଲ ହେଲା—ବର୍ଷେ ହବ ତ ନାହିଁ ବାହାଘର ।

ଯମୁ ।—ଆଠମାସ ମ । ଦେଖୁଚ ତ ଯୁଆଡ଼ଭିତରେ ବେଲ୍ ଲେମନ୍ ଜଣାପଡ଼ ହେଇଗଲାଣି ।

ହର ।—ବୟସ କେତେଗୁଡ଼ାଏ ହବ ଜ ?

ଯମୁ ।—ପନ୍ଦର ବରଷ ଟି ।—କହନ୍ତି ବାହା ହେଲେ ଗୁଲ୍ ଉଠିଣ ଫେରିଯାଏ ଯେ ଆମର ଗୁଣମଣିଙ୍କର ତ ଗୁଣ ଅଧିକ ଅଧିକ ବାହାରୁଚ ।

ହର ।—ଛି ଛି !—ଅହା ମୋ ମନ ତୁମ ବୋହୂପାଇଁ ବଡ଼ ଖାଣ୍ଡି-ହଉଚ ।

(ଗୀତ)

ରାଗିଣୀ ଝିଁ ଝିଟ—ତାଲ ଖେମଟା ।

କେଉଁ ସୁଖାଶାରେ ଏ ପାପ-ସଂସାରେ ବଞ୍ଚିବାକୁ ମନ ବଳବ ।
ଅତିଘୋର ବ୍ୟଭିଚାର ଦେଖି ଛାତିରେ ଢାହାର ସହିବ । ପଦ ।
ଭାସିଲେ ପୁରୁଷେ ପାତକ-ଜଳେ,
ମରିଲେଣି ସବେ ଅଧର୍ମ ଫଳେ,
କଲଙ୍କୀ ହେଲେଣି କଲଙ୍କ ବଳେ,
ଦୁଃଖ-ଜଳେ ଭବ ଭାସିବ (ଏବେ) । ୧ ।
ପୁରୁଷ ଛାୟାରେ ଶିଖିଲା ନାରୀ,
ସତେ କରେ ବଳି ହୋଇବ ପାରୁ,
ଦବାନଳେ ଖୋଜ ଦେଲାଣି ଖାରୁ,
ଏ ଶୋକ ଜୀବନ ରହିବ (ଛାର) । ୨ ।

ସୁଭୋଜନ କୁଭୋଜନ-ସେବାରେ,
କୁଳବଧୂ ପ୍ରୀତି ନ ପାଏ ବାରେ,
ନଣା ବେଶ୍ୟା ସାର ହେଲା ଏକାଳେ,
ଏ ଘୋର ପାପ କେ ଦେଖିବ (ହାୟ) । ୩ ।

ନେପଥ୍ୟେ !—ଘଣ୍ଟ ଓ ଘଣ୍ଟାଧ୍ୱନି ।

ଦାସ ।—ଯମୁନା ! ଗୃଲ ଠାକୁର ଭୋଗ ଆଳତି ହେଲାଣି ।

[ଦାସଦାସୀ ଓ ଯମୁନାର ପ୍ରସ୍ଥାନ ।

ଯବନିକା ପତନ ।

(ନେପଥ୍ୟେ ଗୀତ)

ରାଗିଣୀ ବେହାଗ । ତାଳ ଯତ୍ର ।

ଗୋ ଏଥର—ଯିଭଳ ନ ହେଲେ ପଥର ।
ଝୁରଝୁରି ହବା ନଣି ଯିବ ଜୀବ ମାତର । ପଦ ।
ପ୍ରଣୟ-ପାଦପ ହେଲେ ସ୍ନେହ-ଲତା ତ୍ୟାଗ କରେ,
ନ ଜାଣେ ଲଭନ୍ତା ଏକା ଏ କାଳକୁ ଛାଡର । ୧ ।

---

# ତୃତୀୟ ଅଭିନୟ ।

## ପ୍ରଥମ ଦୃଶ୍ୟ—ପାଙ୍କତି ବାଈର ଘର ।

[ ଗୃହଟି ଅତ୍ୟନ୍ତ ସୁସଜ୍ଜିତ, ତଳେ ମଜଲିସ ପ୍ରାୟ ବଛଣା, କୃଷ୍ଣଚରଣ, ଗଙ୍ଗାଧର, ବଂଶୀବଦନ ଓ ଅନ୍ୟାନ୍ୟ ବାବୁମାନେ ଅର୍ଦ୍ଧଗୋଲାକାର ଭାବରେ ଉପବିଷ୍ଟ । ସମ୍ମୁଖେ ଯାଡ ହୋଇ ଆଠଗୋଟି ବୋତଲ ଓ ଆଠଗୋଟି ଗ୍ଲାସ ଏବଂ ଭିନ୍ନ ବାସନରେ କିସ୍‌ମିସ୍, ବାଦାମ, ପେସ୍ତା ଓ ଗୁଜରାଟ ସଂସ୍ଥାପିତ, ମଧ୍ୟଭାଗରେ ପାଙ୍କତି ବାଈ କୃଷ୍ଣଚରଣ ଆଡ଼କୁ ମୁହଁକରି ଉପବିଷ୍ଟା ]

କୃଷ୍ଣ ।—ବଂଶୀବାବୁ ! ସହରେ ଯେତେ ବାଇ ଅଛେ ଆମାଦେର ପାଙ୍ଗା ବାଈର ମତନ ଅବୁ କୋଈଏଁ ଦେଖା ଜାଇ ।—ଆଜ୍ ଯେମନ ଶନିବାର—ତେମ୍ନି ମହାଦାଉ—ଆଉ ତେମନି ପାଙ୍ଗାବାଈ ।—ଅତଏବ ସଂଗଲେ ମିଲେ ପାଙ୍ଗା ବାଈର ବାରେ ଜୟ ଘୋଷଣା କର ?

ସମସ୍ତେ ।—ଜୟ ପାଙ୍ଗା ବାଈ କ ଜୟ ! କ୍ୟା ମହାଦେ ।

କୃଷ୍ଣ ।—ଅବଦୁଲ୍ଲା—

ନେପଥ୍ୟ ।—ଜି !

କୃଷ୍ଣ ।—(ଇଂରେଜୀରେ) ଏକରକମ ତାଡେ ଏଗ୍ରା ବଣ୍ଟରୁ ?-ଯଲଦ ଆଓ ।

[ ଅବଦୁଲ୍ଲାର ପ୍ରବେଶ ।

ଦୋ—ସବକୋଇକୁ ଏକ ଏକ ଗ୍ଲାସ କର୍‌କେ ଅଗେ ବ୍ରାଣ୍ଡି ଦୋ ବାଦ ଉସ୍‌କେ ତୁମେ କ୍ୟା ଖାନାଉନା ବନାୟେ ଦୋ ଲେଇଆଓ ।

ଅବ ।—(ଏକ ବୋତଲ ଖୋଲି ବ୍ରାଣ୍ଡି ଗ୍ଲାସରେ ଢାଳି କୃଷ୍ଣଚରଣଙ୍କୁ ଦେବାର ) ।

ବଂଶୀ ।—ଏ ବେଟା ଅନେକ ଯକ୍ ଦେର କରବେ—ଆମ୍‌ରା କ ତାବସ୍ୱେ ଓର ମୁଖ୍ ଖାନା ଦେଖ୍‌ତେ ଥାକ୍‌ବୋ ? ( ଏକ ବୋତଲ ଖୋଲି ବ୍ରାଣ୍ଡି ଗ୍ଲାସରେ ଢାଳି ପାନକରଣ ) ।

ସମସ୍ତେ ।—(ଯେଝା ଇଚ୍ଛାମତେ ଏକ ଦୁଇ ଗ୍ଲାସ ମଦ୍ୟପାନ ଓ ଫଂସ୍ମିସ୍ ଇତ୍ୟାଦ ଗୃଷ୍ଟ ଭକ୍ଷଣ ) ।

ବଂଶୀ ।—ବଡ଼ା ଅଚ୍ଛା ହୁଆ । ପାଙ୍ଗା ! ତୁଇ ଯେ କୋଇ ମଦ ଖେଲନା ?

କୃଷ୍ଣ ।—ଖାଉଥଯ, ଖାଉଥଯ ତାକେ ।

ପାଙ୍ଗା ।—ମୁଁ ଖାଇବ ନାହିଁ ।

ବଂଶୀ ।—ହାଁ କେଉଁ ଖାବନା ?

ପାର୍ବ ।—କେମ୍‌ନେ ହବ ?

କୃଷ୍ଣ ।—କୋନ୍ ଇନ୍‌ସ୍‌ପେକ୍‌ଟର ?—ଚଲ୍ଲ ଯାଓ ?

ବଂଶୀ ।—ଶାଲା କେ ଇନ୍‌ସ୍‌ପେକ୍‌ଟର ବେ—ବସ୍—ଚଲ୍ଲଯାଓ ।

ସମସ୍ତେ ।—ନିକାଲ୍ ଦୋ—ମଜ୍‌ଜକେ ବଖତ ଭଣ୍ଡୁର କରନେ ଆୟେ ।

ପଲ ।—(ଅନୁଚ୍ଚ ରୂପକର ପାର୍ବତୀ କାନରେ) ଏଇନ୍‌ସ୍‌ପେକ୍‌ଟର ଆଉ ଦଫ୍ତର ବାବୁ ଆସିଚନ୍ତି ।

ପାର୍ବ ।—(ଟିକଏ କୃଷ୍ଣଚରଣ ଆଡ଼କୁ ଅନାଇ) ନାହିଁ । ମନା କର ଦଅ କୁଣ୍ଢେଇ—ବାବୁ ଅଛନ୍ତି ।

ନେପଥ୍ୟେ ।—(ପୁନର୍ବାର କବାଟରେ ଧକ୍କା ମାରିବା ଶବ୍ଦ) ।

ବଂଶୀ ।—କେ ଓ ଶାଲା ?

କୃଷ୍ଣ ।—ଯାଓ ତୁମ୍ ମନା କରଦୋ ।

[ପରସ୍ପର ପ୍ରସ୍ଥାନ ।

ବଂଶୀ ।—ବେଟା ଇନ୍‌ସ୍‌ପେକ୍‌ଟର ଦେଖାଚେ—କତ ପୁଲିସେର ଇନ୍‌ସ୍‌ପେକ୍‌ଟରକେ ହଜମ୍ କରେ ଦିୟେଚି । କଲ୍‌କାତା ହତୋ ତୋ ବେଟାକେ ଦେଖିୟେ ଦିତୁମ୍ ।

କୃଷ୍ଣ ।—ହେଁ ମଜାଲଗ୍ ବଂଶୀବାବୁ ଥଣ୍ଡା ହୟେ ଗାଛେ ଯେ ।

ବଂଶୀ ।—ନା, ନା, ଦେଡ଼ଡୋ ରେ ଶ୍ଳାହ୍‌ଟା ?

ସମସ୍ତେ ।—(ପୁନର୍ବାର ଥରେ ଦୁଇ ଥର ପୂର୍ବପ୍ରାପ୍ତ ମଦ୍ୟପାନ ଓ ଗୁଟ ଭକ୍ଷଣ) ଖାସାବ୍ରାଣ୍ଡି, ଜୟ୍ ରହେ, ହରବୋଲ୍ଲେ !

ବଂଶୀ ।—ହେ କ୍ରିଷ୍ଣବାବୁ, ଏକ୍ ଆଦ୍‌ଟା ଏସମୟ ଗାନ୍ ନା ହଲେ କେମନ୍ ଅମୋଦଟା ପାନ୍‌ସେ ପାନ୍‌ସେ ହୟେ ଯାଚେ ।

କୃଷ୍ଣ ।—(ଉଚ୍ଚୈ) ତାଇତୋ । ବାଇସାହେବ—ତୁମ୍ ମେରା ବାଇ ସାହେବ । ଏକ୍‌ଟୋ ଗୀତ ଫରମାସୀ ଦେଖି ଗାଓନା ।

ବଂଶୀ ।—ଗାଓ ଗାଓ—ଆମି ତାଲ ଦିଚି—ଓରେ ଧରତୋ ଓହକେ ସାରଙ୍ଗା ଆର ତବଲ୍ଲାଟା ।

ନେପଥ୍ୟ ।—( ବାଦ୍ୟ )

[ ଗୀତ ସମସ୍ତେ ବଂଶୀବାବୁ ଥରେ ଦୁଇଥର ତାଳ ମାରୁ, ସମସ୍ତେ କ୍ରମେ, ମସ୍ତକ ଭଙ୍ଗିକରି ତାଳରେ ତାଳ ଦେବାର ଓ ମଧ୍ୟେ, "ବ୍ରାଭୋ" "ବାହ୍ୱାବା" ଶବ୍ଦ କରିବାର । ]

ପାଙ୍କ ।—( ଗୀତ )

ଗର୍ଜିଣୀ ଖଙ୍କରୀ — ତାଳ ଅଡ଼ଖେମ୍‌ଟା ।

ସତେ କି ନାଗରବର ଦାସୀକି ମନେ ରଖି'ଛ ।
ଭୁଲି କାହିଁ ନୂଆଭାବେ ଦାସୀକି ପାସୋରିଅଛ । ପଦ ।
ଥିଲା ଭାବ ନୂଆ ଯେବେ, କେତେ ଗର୍ବ ଥିଲା ତେବେ,
ଭାବକୁ ଅଭାବ ଏବେ ଦିନୁଦିନୁ ଭୁଲୁଅଛ । ୧ ।
ଏ ତ ସ୍ତ୍ରୀର ଜୀବଧନ, କହୁଁ ନୂଆ ଅନ୍ୱେଷଣ,—
ପ୍ରସାଦନେ ଅଯତନ କେଉଁଠାରୁ ଶିଖିଅଛ । ୨ ।

ବଂଶୀ ।—ବେଡ଼େ ଗାନ୍ ।—ବେସ୍ ବେସ୍ ତୋରା ସବ୍ ଅମନ୍ ଗୋଲ୍ କରିବ ତୋ କୁଛୁଇ ହବେ ନା—ଗାନ୍ ଏକ୍‌ଟା ଗାଇବେ ଯେ ତାଯ୍ ତୋଦେର ଗଳା ଓକେ ଏକେବାରେ ଡୁବ୍‌ଯେ ଦିଚେ ।

ଗଙ୍ଗା ।—ହଁ ହଁ ଡୁବ୍‌ଯେ ଦିଚେ—

ଜନୈକ ।—( ସ୍ୱର ଧରି ) ଡୁବ୍‌ଯେ ଦିଚେ ।

ସମସ୍ତେ ।—( ଗୀତସ୍ୱରରେ ତାଳ ଦେଇ ) ଡୁବ୍‌ଯେ ଦିଚେ, ଡୁବ୍‌ଯେ ଦିଚେ, ଡୁବ୍‌ଯେ ଦିଚେ, ଦେ ଡୁବ୍‌ଯେ ।

କୃଷ୍ଣ ।—ଅରେ କିଏ ମଦ ଖାଇବ ନାହିଁ ?

ସମସ୍ତେ ।—( ପୂର୍ବଂବାର ମଦ୍ୟପାନ ଓ ଗୁଟ ଭକ୍ଷଣ ) ।

କୃଷ୍ଣ ।—( ଏକ ଗ୍ଲାସ ଓ ବୋତଲ ଉଠାଇ ) ଖାଅ, ଖାଅ— ଗୋଟିଏ ବୋତଲ ଯେମନ୍ତେ ଖାଲି ନ ରହେ ।

ସମସ୍ତେ ।—( ପୂର୍ବବତ୍ ମଦ୍ୟ ପାନ ଓ ଗୁଟ ଭକ୍ଷଣ ) ।

କୃଷ୍ଣ ।— କ୍ୟା ମଉଜ ହେ ।—ବଂଶୀବାବୁ ଅଉର ଏକଠୋ ଗାନ୍ ହେଲେ କେମନ୍ ହବେ ?

ବଂଶୀ ।—ଓରେ ବେଶ୍ ହବେ ରେ ବେଶ୍ ହବେ ।

ସମସ୍ତେ ।—( ସ୍ୱର ଧରି ) ଓରେ ବେଶ୍ ହବେ ।

ନେପଥ୍ୟେ ।—( ବାଦ୍ୟ )

[ ଗୀତ ସମୟେ ସମସ୍ତେ ପ୍ରଥମେ ଟିକିଏ ଲୁଚି ହୋଇ ମୁଣ୍ଡ ହୁଙ୍କାରୁ ପଛକୁ ପୂର୍ବପ୍ରାପ୍ତ ତାଳ ଦେବାର ଓ ଶବ୍ଦକରଣ ଓ ଲମ୍ଫ ଓ ନୃତ୍ୟ । ]

ପାତ୍ର ।—( ଗୀତ )

ରାଗିଣୀ ଅହଂ—ତାଳ ଏକତାଳୀ ।

ପୀରତି ପରମଧନ ଧରା-ଧାମରେ ।

ମନେ ମନ ମିଶାମିଶି କେତେ ସୁଖ ହବାଜାଣି

କାହିଁ ଚନ୍ଦ୍ରା କହୁଣି;

ଦେହେ ଦେହ ସମ୍ମିଳନ ସ୍ୱର୍ଗଭୋଗ ଉପାର୍ଜ୍ଜନ

ତହିଁ ଭାବ କେସନ !—

ବୁଝିବ କେ ସୁଧାରସ ନ ଚାଖିଲେ ଥରେ । ୧ ।

କୃଷ୍ଣ ।—ଏ ଗୀତଟା ବେଶ୍ ହେଲା—ବେଶ୍ ହେଲା ।

ସମସ୍ତେ ।—( ଗୀତସ୍ୱରରେ ତାଳଦେଇ ) ବେଶ୍ ହେଲା, ବେଶ୍ ହେଲା ।

[ ଅବଦୁଲ୍ଲା ଓ ଅନ୍ୟ ଏକଜଣ ପଠାଣର ଭୋଜନପାତ୍ର ଗୁଡିଏ ସଜାଡି ଆଣି ସମ୍ମୁଖରେ ସ୍ଥାପନ ଓ ପଠାଣର ପ୍ରସ୍ଥାନ ।

କୃଷ୍ଣ ।—( ମଦଭୋଳରେ ) ଆସ—ଅବଦୁଲ୍ଲାକା ପ୍ରସାଦ ପାଇବା ।

ଗଙ୍ଗା ।—( ଉଚ୍ଚରୁ ) ମହାପ୍ରସାଦ ।

ବଂଶୀ ।—ଅରେ ଜଗନ୍ନାଥେର୍ କପାଲେଓ ଅମନ୍ ମହାପ୍ରସାଦ୍

ଏଜନ୍ମେ ଘଟ୍‌ବେ ନା । ଅରେ ଗେଷ୍, ଅରେ ମଦ୍ ଖା—
ସୋଡା ଉଁଅଟ୍ରି କୋଇ ?

[ ପଠାଣର ସୋଡାବୋତଲ ଘେନି ପ୍ରବେଶ ।

ସମସ୍ତେ ।—( ମଦ୍ୟପାନ ଓ ସୋଡାସେବନ ପରେ କୃଷ୍ଣବାବୁର ଅଚେତନ ହୋଇ ପତନ ) ।

ବଂଶୀ ।—ଏଃ ଏଁଖନ୍ ଥେକେ ଏମନ୍ ହୟେଗେଲ ! ଧରତୋ ଅବଦୁଲ୍ଲା ବାବୁକୁ ଏଇ ଖଟ୍‌ନା ଉପର ଶୁଇ ଏ ଦୟେ ଯାକ୍ ।

[ ଅବଦୁଲ୍ଲା ଓ ବଂଶୀବଦନ ଧରାଧରି କରି କୃଷ୍ଣଚରଣଙ୍କୁ ଖଟରେ ଶୁଆଇବା ଓ ଜଣ ବାବୁର ଉଠି ପ୍ରସ୍ଥାନ ।

ନେପଥ୍ୟ ।—( ବମନ ଶବ୍ଦ ) ।

ଗଙ୍ଗା ।—ଅରେ—ଟିକଏ ପାଣି—ଅଣ—ରେ—ୟେ ବାନ୍ତି କଲେ ( ପତନ ) ।

ଅନ୍ୟବାବୁମାନେ ।—( ଭୂମି ମତୁଆଲା ହୋଇ ବୁଲିବାର ) ।

ବଂଶୀ ।—ଅବଦୁଲ୍ଲା ! ଗାଡି ତୟ୍ୟାର ହେ ?

ଅବ ।—ଜି ବାବୁ ସାହେବ—ତୟ୍ୟାର ହେ ।

ବଂଶୀ ।—ଓରେ ଆୟ ସବ୍—ଗାଡିତେ ଉଠ୍‌ବା ।—ଓଗୋ ଅମ୍‌ନେ ଯାବେ ନାରେ—ଅବଦୁଲ୍ଲା ଦୁଇ ଏ ବୋତଲ୍ ଖୁଲେ ନୟେ ଆଗେ ଆଗେ ଚଲ୍‌ତୋ ।—ଅରେ ଓ ପାଠାନ୍ ଖାୟା ଏ ବାବୁକୁ ଅସ୍ତେ ଅସ୍ତେ ଉଠିୟେ ଲେ ତୋ ।

[ ଅବଦୁଲ୍ଲା ଆଗେ ଯାଆନ୍ତେ ତତ୍ପୃଷ୍ଠରେ ସମସ୍ତଙ୍କର ଝୁଲି ପ୍ରସ୍ଥାନ ଓ ପଠାଣ ଏବଂ ଅନ୍ୟଜଣେ ଗଙ୍ଗାଧରଙ୍କୁ ଟେକି ନେବାର ।

ପାର ।—ଯାଏଁ—ଶୋଇବ । ମୁଣ୍ଡଟା ସବୁ ବୁଲେଇ ଦଉଚ—ବଡ଼ ବଡ଼ା ମଦ—( ଉଠି ପତନ ) ।

ନେପଥ୍ୟେ ।—ଅରେ ଅରେ !

[ ପରଶୁର ପ୍ରବେଶ ।

ପର ।—( ପାବଂଗୀକ ଧରି ) ଉଠ, ଉଠ ( ହାତଧରି ପାବଂଗୀଙ୍କ ଉଠାଇନେଇ ଖଟ ଉପରେ ବସାଇ ଦିଅନ୍ତେ ପାବଂଗୀର ଅଚେତନ ପ୍ରାୟ ଖଟରେ ପତନ )।—ଯେ ଖାନା ସବୁତ ମୋର—ବାଃ ବାଃ ! ଅଜଗରକୁ ଦାନ୍ତ ଗମ ।—ଅରେ ଭାଇ ଅଓନା—ଖାନା ଥଣ୍ଡା ହୋ ଯାତା ।

ନେପଥ୍ୟେ ।—ଚଲୋ ଚଲୋ ।

[ ଅବଦୁଲ୍ଲା ଓ ପଠାଣର ପ୍ରବେଶ ଏବଂ ପରଶୁସହିତ ଭୋଜନ କରି ପାବୀଙ୍କ ନେଇ ସମସ୍ତଙ୍କର ପ୍ରସ୍ଥାନ ।

ନେପଥ୍ୟେ ।—( ଗୀତ )

ରଚିଣୀ ଗାରଭୈରବୀ—ତାଲ ଅଡ଼ଖେମଟା ।
ଛି ଛି ଏ ଜୀବନ-ନାଟ ସଂସାର ପର୍ଯ୍ୟଙ୍କ-ପୂରେ ।
ସରବ ସକଳ କଥା ଏସଂ ନୀଚରୂପରେ । ପଦ ।
ହାତ ସ୍ୱର୍ଗସୁଖ ଛାଡ଼ି, ଏସନ ନରକେ ପଡ଼ି,
ଅର୍ଦ୍ଧେ କେ ପାରଇ ସୁଖ ଦୁଃଖ ତା ଅନନ୍ତଦୂରେ । ୧ ।
ସଂସାର ମାୟାବନ୍ଧନ, କ୍ଷଣେ ତା ହୁଏ ଖଣ୍ଡନ,
ଅଜ୍ଞାନପଥେ ମାତିଲେ ବନ୍ଧନେ ପଡ଼ିବ ବଲେ । ୨ ।

କୃଷ୍ଣ ।—( ଖଟରୁ ଉଠିବସି ମତୁଆଲା ପ୍ରାୟ ) ବଡ଼ ଗମ୍ମତ ହେଲା—ବଂଶୀବାବୁ—ତୁମାକେ—ଅଜକାର ମଜା କେମନ—କେମନ ଲାଗଲ—ବଡ଼ ଗମ୍ମତ—ଏମନ ମଜା ଆଉ ହଏ କଇବ ?—ଗଙ୍ଗାଧର—ତୁ କୁଥରେ ଗଲୁ—ଅରେ ଗଙ୍ଗା—ଗଙ୍ଗାଧର—ଅଜର ମଦ ବଡ଼ କଡ଼ା—ମୂଁ କେତେ ଆଣିଥିଲି—ବାବୁ ଆଣିଥିଲି—ବିଲାତୀମଦ—ପେଟ ପବନ

ହୋଇଗଲା—ଗଙ୍ଗା—ଏ ମଜା ଆମ୍ଭ ବାପ ଅଜାଙ୍କ—କପାଳେ ନାହିଁ—ମୂର୍ଖ—ମରହଟ୍ଟି—ଗଙ୍ଗାଜଳ ପବିତ୍ର—ଦଗଅଜଳ ପବିତ୍ର—ସ୍ୱେ ସାତ ସମୁଦ୍ର—ଢେର ଗଙ୍ଗା ପାରହୋଇ ଆସୁଛି—ସ୍ୱେ ତେପଟ ପବିତ୍ର ! ( ଟଳେ ପଡ଼ୁ ଖଟକୁ ଧରି ଛିଡ଼ା ହୋଇ ରହି ଯିବାର )—ପାଷଣ୍ଡ—ପାରୁ ରେ—ପାରିବଢ—ଭୁ କଡ଼ିଁଠି ଅନ୍ଧୁ ମ—ମତେ 'କ ଅଜ କଥା କହିବୁ ନାହିଁ ?—ପାରୁ ଆମର ଚୁଡ଼ିଛି—ମାନ କରଛି—କାଲି ବଣିଅ ଡାକ ସୁନାର ଗହଣା—ବନାରସୀ-ଶାଢ଼ୀ ଦେବ !—ପାରୁ—ପାଷଣ୍ଡ—ଅଁ—ମୋ ଧନ—ମୋ ପ୍ରାଣ—ଉଃ !—ଘଣ୍ଟା କଣ ହେଉଛି—ଅଉ ଟିକଏ ମଦ—ଅବହୁଣ୍ଟା—ହୁଣ୍ଟା—ହୁଲୁଣ୍ଟା—ଯେସସା ସସପ—ଅରେ ଅବହୁଣ୍ଟା—ହୋଜା ଭାଇ—ଅବହୁଣ୍ଟା—କେହି ନାହିଁ ?—ସମସ୍ତେ ଚାଲିଗଲେ—ଚାଲିଗଲେ—କାଲ୍ ଦେଖେଙ୍ଗେ !—ବାଇ ଆମର ଭଲ ଲୋକ (ବାଉ ଉପରେ ହାତ ପଡ଼ିଯିବାର)—ଅଛି ଥଣ୍ଡା ଲୋକ—ସ୍ୱାସ୍ଥ୍ୟଟିଏ—ପାରୁ !—କଥା କହ ଟିକଏ ମ—ଉଠ ମ—ଟିକଏ ମଦ ଦେ ମ ।—କଥା କହିବୁ ନାହିଁ—କହିବୁ ନାହିଁ—ତୋର ଇନସ୍ପେକ୍ଟର ଅଛି ପରା ?—ଶାଲାର ବେଟା ଶାଲା—ଇନସ୍ପେକ୍ଟର ।—ହିଁ ହିଁ—ତାର ପାଇଁ ଏତେ ଗର୍ବ—ଅଚ୍ଛା !—କଥା କହିବୁ ନାହିଁ ?—( କାନ୍ଥ ନିକଟକୁ ଯାଇ ଝୁଲୁଥିବା ଏକଖଣ୍ଡ ତରବାରୀ ଧରି )—କଥା କହିବୁ ନାହିଁ—ଦେଉ, ଥିବୁ ନା ଏପରି କରିବୁ—ତୋତେ ମାରିବି—ମୁଁ ମରିବି—( ତରବାରି ଖୋଲି ) ତେବେବି କଥା କହିବୁ ନାହିଁ ?—ଦେଖିବୁ ?—ତୋର ଜୀବନ ଗଲା—ଗଲା ( ତରବାରିରେ ବେକରେ ଏକ ଚୋଟ ପ୍ରଦାନ ) ।

ପାର ।—( ଅଚେତନାବସ୍ଥାରେ ) ଏଁ —

କୃଷ୍ଣ ।—( ଚମକି ) ଆଉ ଗୋଟେ ( ଅନ୍ୟ ଏକଗୋଟ ପ୍ରଦାନ ) —ବସ୍ ମୂଣ୍ଡ ଛିଣ୍ଡିଗଲା—ଯେସାକୁ ତେସା—ଯା ଇନସ୍ପେ-କ୍ଟର ଜଡକ—

ନେପଥ୍ୟେ ।—(ଘୋର କୋଳାହଳ ସ୍ୱରେ) ଏ ଖୁଣ—ଏ ଖୁଣ ।

[ଦ୍ରୁତବେଗେ ଅବଦୁଲ୍ଲାର ପ୍ରବେଶ ।

ଅବ ।—ଅରେ ଖୁନ୍ ହୋଚିୟା—ହୁଆଁସେ ଯଲ୍‌ଦି ବାବୁକୁ ଲେ ଚଲେ ।

ଯବନିକା ପତନ ।

( ନେପଥ୍ୟେ ଗୀତ )

( ପୂର୍ବଗୀତସ୍ୱରରେ ଅବଶିଷ୍ଟ ଗୀତ ଗାୟନ )

ଛି ଛି ଶେଷେ ଏହି ଫଳ—କଳଙ୍କ କଳଙ୍କେ ପଡ଼ି,
ପ୍ରଭେଦ କି ରହେ ତେବେ ଜଗତ ଓ ଯମପୁରେ । ୩ ।
ଯେ ଜୀବନ ଆଜୀବନ ପାପ-ପଥେ ରଖେ ଧ୍ୟାନ,
ମନୁଷ୍ୟତା ସବୁ ତାର ଏହିରୂପ ଏକାଠୁଲେ । ୪ ।

———

# ଚତୁର୍ଥ ଅଭିନୟ ।

ପ୍ରଥମ ଦୃଶ୍ୟ—କୃଷ୍ଣଚରଣର ବୈଠକଖାନା ବା ଶୟନାଗାର ।

[ କୃଷ୍ଣଚରଣ ବିଛଣାରେ ଏକାକୀ ଉପବିଷ୍ଟ ଓ ସମ୍ମୁଖେ ବାକ୍ସ ଏକଗୋଟା ଖୋଲା ହୋଇ ସଂସ୍ଥାପିତ । ]

କୃଷ୍ଣ ।—( ସ୍ୱଗତ ) ହାୟ ! ମୁଁ କି କର୍ମ କଲି ! ଧନ, ଯୌବନ, ପିତା, ମାତା, ସମସ୍ତ ଗଲା ! ! ସକାଳ ହୋଇ ଗଲାଣି—ପୁଲି-ସ ତ ଏହିକ୍ଷଣି ଆସିବ । ହାୟ ! ହାୟ ! ଆଉ ଦିନେ

ଇନସ୍ପେକଟରଙ୍କୁ ବସାଇ କେତେ ମଦ ଖୁଆଇଛୁ, କାଲି ତାହାଙ୍କ ଡାଲୁ ଗାଳି ଦେଇ ଫେରାଇ ଦେଲି ! ହାୟ ! ସବୁ ମୋର କପାଳର ଦୋଷ ! ଯୋଗକୁ ବ୍ରହ୍ମା ଘଟନ୍ତି ନାହିଁ ! ଏତେବେଳେ ଆଉ ଉପାୟ କ ? — ଯାହା କରିବ । — ଆହା ! ଭାର୍ଯ୍ୟାକୁ ଅକାରଣ କାହିଁକି ଦଣ୍ଡ ଦେଇ ଆସିଲି — ଏସବୁ ତାର ଫଳ । — ଏହିକ୍ଷଣି ପୁଲିସ ଆସିବ, ଏହିକ୍ଷଣି ସମସ୍ତେ ଜାଣିବେ — ଆଉ ବଞ୍ଚିକରି କ ଲାଭ ? ସରକାରର ଯେତେ ଟଙ୍କା ଖାଇ ଯାଇଛି ତା ବ ଧରା ପଡ଼ିବାର ସୂତ୍ର ଲାଗିଲାଣି — ସେ ଅର୍ଥ ପଡ଼ିଲେତ ଆଉ ରକ୍ଷା ନାହିଁ । ଏଣେ ବଞ୍ଚିବାର ତ ଭରସା ନାହିଁ — ଏଣେ ବଞ୍ଚିଲେ ବ ତେଣେ ପଡ଼ିବାକୁ ହବ । ମୋ ପକ୍ଷେ ମରଣ ଶ୍ରେୟସ୍କର । — ତେବେ ଆଉ ବିଳମ୍ବ କାହିଁକି ? ( ଦୀର୍ଘ-ନିଃଶ୍ୱାସ ତ୍ୟାଗପୂର୍ବକ ବାକ୍ସ ମଧ୍ୟରୁ ଏକ କାଗଜପୁଡ଼ିଆ ବାହାର କରି ଖୋଲି ଦେଖିବାର ) ଏହି ଶଙ୍ଖୁଆ — ( ପୁଡ଼ି-ଆକୁ ଚୁମ୍ବିବାର ) । — ଆହା ! ଏତେବେଳକୁ ତୁହି ମୋର ଏକମାତ୍ର ବନ୍ଧୁ — ମୁଁ ଆଉ ସଂସାରରେ କାହାରିକି ବନ୍ଧୁ ବୋଲି ଦେଖୁ ନାହିଁ । — ହାୟ ! ମୋର କୃତକର୍ମ ମୋତେ ଭୋଗ କରିବାକୁ ପଡ଼ିଲା ! ବେଳସୁଁ ବାପ, ମା, ଭାର୍ଯ୍ୟାର କଥା ମାନିଥିଲେ କାହିଁକି ଏତେସବୁ ହୋଇଥାନ୍ତା ! ବାପା ! — ମା ! — ତୁମ୍ଭଙ୍କୁ ଏଇଠି ଦଣ୍ଡବତ (ଦଣ୍ଡବତ କରଣ) — ମୋ-ତେ ବିଦାୟ ଦିଅ ! — ରସମଞ୍ଜରି ! ( ଲୋତକ ମୋଚନ ) ମୋର ଦୋଷ କ୍ଷମା କରିବ — ମୁଁ ବଡ଼ ଅପରାଧୀ । ତୁମ୍ଭର କପାଳ ! — ଆହା ! ଠିକଏ ହସିଖୁସି ହୋଇ ଭଲ ଘରୁ ଆସିଥାନ୍ତି ! ହାୟ ! କି ଦୁର୍ଯ୍ୟୋଗ ! ରସମଞ୍ଜରି ! ମୁଁ ବଡ଼ ଦୁଷ୍ଟାମୀ ! ମୋ କଥା ମନେ ହେଲବ ନାହିଁ ! — ମୁଁ ତୁମ୍ଭଙ୍କୁ

ଭଗବାନଙ୍କ ହାତରେ ସମର୍ପି ଗଲ ! ( ନେତ୍ରକ ମୋଚନ ) ।
—ଆଉ ବଲମ୍ବ କାହିଁକ ?—( ଚତୁର୍ଦ୍ଦିଗ ନରୀକ୍ଷଣ କର ).
ଆଉ କାହିଁକ ?—ଏ ମାୟା ତ୍ୟାଗ କର । ଭଗବାନ୍ ! ମୋର
ପାପର ଦଣ୍ଡ ମୋର ହାତରେ ହେଲା ! ( ଶଙ୍ଖୁଆ ଭକ୍ଷଣ ଓ ଟିକଏ
ପାଣି ପିଇ ବାକ୍ସ ବନ୍ଦ କର ଅନ୍ୟତ୍ର ରଖିଦେଇ )—
ଯାଁ—ଯାହା ହେବାର ଥିଲା ହୋଇଗଲା । ( ଶୟନ ) ।

[ ପୁଲିସ ଇନସ୍ପେକ୍ଟର, ଜ ୬ ଣ କନେଷ୍ଟବଲ,
ପରଶୁ, ଅନାଦ ଓ ଗଙ୍ଗାଧରର ପ୍ରବେଶ ।

ଇନ ।—ଉଏଲ୍, କାହାଁ ହେ କୃଷ୍ଣଚରଣ ? —ଏ କୋନ୍ ଶୁଁ ?

ପର ।—( ଶ୍ଲେଷଯୁକ୍ତ ବଚନସ୍ୱରେ ) ଅଜ୍ଞା ସେଇ କୃଷ୍ଣବାବୁ ।

ଇନ ।—ହାଁ ହାଁ ଓ କୃଷ୍ଣଚରଣ ହେ । ( ସ୍ୱଗତ ) ବେଟା କାଲ୍
ଘରେ ଆବାର ଆମାକେ ହାଁକଏ ଦଫେରେ—ଏଖନ ଦଛି
ମଜାଟା ଦେଖିଯେ । ( ପ୍ରକାଶ୍ୟେ ) ଉଏଲ୍, କୃଷ୍ଣଚରଣ !

କୃଷ୍ଣ ।—( ଧୀରେ ଉଠିବସି ସ୍ୱଗତ ). ହାୟ ! ଏହା ଆଗେ କ ମଳ
କାହିଁକ ?

ଇନ ।—ଉଏଲ୍, ମୁଁ ମେ ଯବାବ ନେହିଁ ?—ଯେ ପରଶୁ ଦାବ
କରଛାହେ, ତୁମ୍ ଗୟା ଗତକୁ ପାଙ୍ଗ ବାଇକୁ ଖୁନ୍
କୟା—ଯବାବ ଦୋ—ଖୁନ୍ କୟା ୟା ନେହିଁ !

କୃଷ୍ଣ ।—( ସ୍ୱଗତ ) ଜଗଦୀଶ୍ୱର ! ଆଉ କାହିଁକ କଷ୍ଟ ଦେଉଛନ୍ତି ।
ରେ ଶଙ୍ଖୁଆ ! ତୋର କ ମୋପ୍ରତି ଲେଶମାତ୍ର ଦୟା ନାହିଁ ?

ଇନ ।—କ୍ୟା ହେ ଯବାବ ଦେତା ନେହିଁ ? ଦେଖୋ କନେଷ୍ଟ-
ବଲ !—ଲଗାଓ ଯୋଡ଼ ।

କୃଷ୍ଣ ।—(ସଭୟେ) ହଁ ମୁଁ ମାରଚ—( ବାନ୍ତ କରବାର ) ।

ଇନ —ଅସାମୀ ଏକ୍‌ବର୍ ହେ ।—ଏ କ୍ୟା ? ନଶା କ୍ୟା ଅବ୍‌ତକ
ଛୁଟ୍‌ତା ନେହିଁ ?

କୃଷ୍ଣ ।—( ପୁନର୍ବାର ବମନ ଓ ବିକଟ ମୁଖଭଙ୍ଗୀ ଏବଂ ପେଟମର୍ଦ୍ଦନ)।

ଜନୈକ କନେଷ୍ଟବଲ ।—ହଜୁର୍ ଓ ମାଲୁମ ହୋତା ହେ କୁଛ୍ ଖାୟା ହେ—ଖାନ୍ନେ ନଶାକା ଏସା ମାଲୁମ ନେହିଁ ହୋତା ।

ଇନ ।—ଅଚ୍ଛା ।—ତୁମ ଦୌଡ଼କେ ଯଲ୍‌ଦ ଡାକ୍ତର ସାହେବକୁ ଲେଆଓ—ଯଲ୍‌ଦ !

[ କନେଷ୍ଟବଲର ପ୍ରସ୍ଥାନ ।

ଦେଖୋ ଗଙ୍ଗାଧର, ତୁମ୍ ବରାବର ଉସ୍‌କା ସାଥ୍ ରହେତା ବୋଲୋ ଓ କ୍ୟା ଖାୟା ହେ !

ଗଙ୍ଗା ।—( ସଭୟେ ହାତ ଯୋଡ଼ି ) ହଜୁର୍ ହାମ୍ ତ କଛୁ ଜାନ୍‌ତା ନାହିଁ—ହାମ୍ ତ ଏହିକ୍ଷଣି ଅସିକା ଦେଖତେ ଏସା ଅବସ୍ଥା ।

ଇନ ।—ଉଏଲ୍ ଅନାଦ, ତୁମ୍ ଉସ୍‌କା ନୌକର୍—ତୁମ୍‌କୁ ସବ୍ ମାଲୁମ୍—ବୋଲୋ ଓ କ୍ୟା ଖାୟା !

ଅନା ।—( ଭୟରେ କୃତାଞ୍ଜଳି ହୋଇ ) ହଜୁର୍ ! ମୁଁ କିଛି ଜାଣେ ନାହିଁ ।—ମୁଁ ମୂରୁଖ ।

ଇନ ।—କ୍ୟା ? ମୂରୁଖ ।—ମୂରଖ ହୋନେସେ କ୍ୟା ନଜର କରନେ ନେହି ସକ୍‌ତା ହେ ?—ତୁମ୍‌ଲୋକ ସବ୍ ଛୁପାତା ହେ !—ଅମୀର ! ୟେ ଦୋନୋକୁ ଗୁତ୍ତୁକୁ ଲଗାଓ ।

[ ଅମୀର କନେଷ୍ଟବଲ ଅନାଦ ଓ ଗଙ୍ଗାଧରକୁ ଗୁତ୍ତକରେ ପ୍ରହାର କରଣ ।

ଅନାଦ ଓ ଗଙ୍ଗା—( ସବେଦନ ) ମାଲୋ, ମଲି ଲୋ । ଦୋହାଇ ଇନସ୍ପେକ୍‌ଟର ସାହେବ—ଅମେ କିଛି ଜାଣୁଁ ନାହିଁ ।

ଇନ ।—ଅମୀର ! ଓ ବାକସ୍ ଖୋଲୋତୋ ଉସ୍‌ମେ କ୍ୟା ହେ ଦେଖା ଯାୟେଗା ।

ଅମୀ ।—( ବାକ୍‌ସ ଦେଖି ) ଏତୋ ବନ୍ଦ ହେ ।

ଇନ ।—ତୋଡ଼ୋ ଉସ୍‌କୁ !

ଅମୀ ।—( ବାକ୍‌ସ ଭାଙ୍ଗି ହୁଇ ଗୁଣ୍ଡା ପୁଡ଼ିଆ ବାହାର କରି ଇନସ୍ପେକ୍‌ଟରଙ୍କୁ ଦେବାର ) ।

ଇନ ।—( ଉତ୍ତମରୂପେ ଦେଖି ) ଅରେ ଏକ୍ତା ଖଙ୍କୁଅ ହେ । ଏ
ଲକ୍‌ଲମ ଖଙ୍କୁଅ ଖାୟା ।

ବୃଦ୍ଧ ।—( ପୁନବାର ବମନ ଓ କୁନ୍ଥାଇବାରୁ ଓ ପୂର୍ବବତ୍ ମୁଖଭଙ୍ଗି
ଏବଂ ପେଟମର୍ଦ୍ଦନ କରି ) ମାଲେ ମୁ ମରଗଲି !

[ ବୈଷ୍ଣବର ପ୍ରବେଶ ।

ବୈଷ୍ଣ ।—( ଲମ୍ବଭାବେ ଇନ୍‌ସ୍ପେକ୍ଟର ପାଦତଳେ ପଡ଼ି ) ଦୋହାଇ
ଇନସ୍ପେକ୍ଟର୍ ସାହେବ—ଓ ଅପ୍‌ନା ଲଡ଼୍‌କା ।

ଇନ ।—ଅରେ କୁଛ୍ ନାହିଁ ହେ ନା ଖାଲି ବୋଲ୍‌ତା ।

ବୈଷ୍ଣ ।—( ଉଠି ବସି ) ମୁ ଗରିବ ଲୋକ—ଶଏ ଟଙ୍କା ଅଣିଛି ।

ଇନ ।—ଶଏ ରୋପେୟା କ୍ୟା ହୋଗା—ଏକହଜାର ରୋପେୟା
ଦେନେ ପଡ଼େଗା । ଏ ସଙ୍ଗୀନ ମୋକଦ୍ଦମା ।

ବୈଷ୍ଣ ।—ଦୋହାଇ ଇନସ୍ପେକ୍ଟର ସାହେବ—ମୁ ଆଉ କହିଁରୁ
ପାଇବି—ଆଉ ପଛକେ ଶଏ ଟଙ୍କା ଧାର କରି ଦେବି—
ଏ ଟଙ୍କା ରଖ—ମୋତେ ରକ୍ଷା କର ।

[ ପ୍ରଥମ କନେଷ୍ଟବଲର ପ୍ରବେଶ ।

ଇନ ।—ଉଏଲ୍—ଡାକ୍ତର ସାହେବ ଅୟା ?—ଗୁଡ୍ ମର୍ଣ୍ଣିଙ୍ଗ !

[ ଡାକ୍ତର ସାହେବଙ୍କର ପ୍ରବେଶ ।

This man has eaten—this—this—
ଖଙ୍କୁଅ ( ପୁଡ଼ିଆ ସବୁ ଡାକ୍ତରଙ୍କ ହାତକୁ ଦେବାର ) ।

ଡାକ୍ତ ।—( ପୁଡ଼ିଆ ଦେଖି ) Yes—Arsenic—Very strong
Arsenic. ( ବୃଦ୍ଧର ମୁଖ, ଜହ୍ଵା ଓ ଓକାଳିଥିବା ପଦାର୍ଥ
ଦେଖି ) send him at once to the hospital. ( ଗମ-
ନୋଦ୍ୟତ ) ।

ବୈଷ୍ଣ ।—( ଗୋଡ଼ତଳେ ପଡ଼ି ) ଦୋହାଇ ଡାକ୍ତର ସାହେବ!—

ହଜୁରଙ୍କ କଲମ୍‌ରେ ସବୁ ଅଛି—ମୁଁ ଗରିବ ଲୋକ ଷଏଁ ଟଙ୍କା ଦେବି—ବେଶୀ ଦେଇ ପାରିବି ନାହିଁ ।

ଡାକ୍ତ ।—ୱେଲ୍, ଇଧର୍ ଆଓ ।

[ ଡାକ୍ତର ସାହେବ ଓ ବୈଷ୍ଣବର ପ୍ରସ୍ଥାନ ।

ଇନ ।—ଦେଖୋ—ଇସ୍‌କୁ ହାମାରା ବଗିମେ ଲେକେ ବୈଠାଓ —ଯଲ୍‌ଦ ହସ୍‌ପିତାଲକୁ ଯାନେ ହୋଗା ।

କନେଷ୍ଟବଲମାନେ ।—ଯୋ ହୁକୁମ ( କୃଷ୍ଣଚରଣକୁ ଧରାଧରି କରି ନେଇ ଯିବାର ) ।

[ ବୈଷ୍ଣବଚରଣର ପ୍ରବେଶ ।

ଇନ ।—ହାମ୍ ଏକ ହଜାରସେ କମ୍ ନେହି ଲେଗା ।—ଡାକ୍ତର ସାହେବକୁ କ୍ୟା ଦିୟା ?

ବୈଷ୍ଣ ।—ସେହି ଶଏ ଟଙ୍କା ।—ହଉ ମୁଁ ଆପଣଙ୍କୁ ପାଞ୍ଚଶ ଦେବି— ମୋ ପୁଅକୁ ରକ୍ଷା କରନ୍ତୁ । ( ଇନସ୍ପେକ୍‌ଟରକୁ ଶଏ ଟଙ୍କା ପ୍ରଦାନ ) ।

ଇନ ।—( ଟଙ୍କା ନେଇ ) ହାମ୍ ବୋଲ୍‌ଦେତା—ଏକ ହଜାରସେ ଏକ ରୁପେୟା କମ୍ ହୋନେସେ ତୁମାରା ଅଚ୍ଛା ନେହି ହୋଗା—ବାକୀ ରୁପେୟା ଝାଲ୍ ଲେ ଆଓ ।

[ ଇନସ୍ପେକ୍‌ଟରର ପ୍ରସ୍ଥାନ ।

ବୈଷ୍ଣବ ।—ହ ମୂର୍ଖାନ୍ତ କାମ କଲି—ମୋର ଛ ପଇହାର ବଦଳେ ଏତେ ଟଙ୍କା ଦେବ ନାହିଁ ! ( ମୁଣ୍ଡ କୋଡ଼ି ହେବାର ) ।

ପଟକ୍ଷେପଣ ।

— — —

ଦ୍ୱିତୀୟ ଦୃଶ୍ୟ—ଜଜ ସାହେବଙ୍କ ଇଜଲାସ ।

[ ଦୃଶ୍ୟ ମିଶଲ; ଜଜ ସାହେବ ନିବିଷ୍ଟମନେ କାଗଜପତ୍ର ଦେଖି ରାୟ ଲେଖିବାରେ ନିଯୁକ୍ତ; ବାମପାର୍ଶ୍ୱରେ ପେସ୍‌କାର ଉପବିଷ୍ଟ

ଓ ସମ୍ମୁଖେ ନଥି ସଂସ୍ଥାପିତ; ପେସ୍କାର ପଶ୍ଚାଭାଗରେ ଜ ୨ ଣ ଚପରାସୀ ଦଣ୍ଡାୟମାନ; ମିଶଲର ଏକପାର୍ଶ୍ୱରେ ଆସାମୀ କୃଷ୍ଣଚରଣ ଓ ତତ୍ପାର୍ଶ୍ୱେ ଜଣେ କନେଷ୍ଟବଲ ଦଣ୍ଡାୟମାନ, ସାହେବଙ୍କ ସମ୍ମୁଖରେ ଜଣେ ଓକିଲ ଓ ହେଡ଼ କନେଷ୍ଟବଲ ଚୌକିରେ ଉପବିଷ୍ଟ ଓ ମିସଲତଳେ ଲୋକାରଣ୍ୟ ଏବଂ ତନ୍ମଧ୍ୟେ ବଂଶୀବଦନ, ଗଙ୍ଗାଧର ଓ ବୈଷ୍ଣବଚରଣ ପ୍ରଭୃତି ଉପସ୍ଥିତ । ]

ଜନୈକ ଚପରାଶୀ ।—( ମିସଲ ଅଗକୁ ଅସି ଉଚ୍ଚସ୍ୱରେ ) ଗ୍ରେପ୍ ଗ୍ରେପ୍ । ( ଫେର ଯାଇ ସ୍ୱସ୍ଥାନେ ଦଣ୍ଡାୟମାନ ) ।

କୃଷ୍ଣ ।—( କନେଷ୍ଟବଲକୁ ଧୀରସ୍ୱରେ ) ଗୋଡ଼ ହଟା ବଡ଼ ଯୋଁ ଲାଇ ହେଉଛି—ଟିକଏ ବସନ୍ତୁ ?

କନେ ।—( ତେଜ ହୋଇ ) ନେହିଁ—ହିଁଆ ବୈଠନେକା ହୁକୁମ ନେହିଁ—ୟେ ବୈଠନେକା ଯ୍ୟା ଅୟେସକା ଜାଗା ନେହି ହେ ।

କୃଷ୍ଣ ।—( ସ୍ୱଗତ ) ମରିବାପାଇଁ ଏତେ ଯତ୍ନ କରି ଯେତେବେଳେ ମରି ପାରି ନାହିଁ ମୋ କପାଳେ ବନ୍ଧୁକ ଫାନ୍'ସ୍ଥା ଅଛି !—ଭଗବନ୍ ! ତୁମ୍ଭେ ଭରସା !

ଗଙ୍ଗା ।—( ସ୍ୱଗତ ) ମୋର କଥା ସରିଲା । କୃଷ୍ଣଟି ଥିଲାବୋଲି ଘୁଷପଇସା ମିଳୁଥିଲା—ସେ ଗଲେ ଆଉ କଏ ଦେବ ?

ବଂଶୀ ।—ହାଁରେ ଗଙ୍ଗାଧର ! କେମନ ହୟେଚେ ? ଯେମନ୍ କାଜ୍ ! ଅମି ତଖନ୍ ତୋକେ ବାର୍ ବାର୍ ବଲ୍ଚି ଏତ ମଦ ଖାସ୍ନେ, ଏତ ମଦ ଖାସ୍ନେ, ତୁ ତ ମାନ୍‌ବାର୍ ଛେଲେ ! ଏଖନ୍ ଯେମନ୍ କାଜ୍ ତେମ୍ନି ଫଲ ।

ଗଙ୍ଗା ।—ମୋ ସଙ୍ଗରେ କଥା କହ ନା ବଂଶୀବାବୁ ! ମୋର ମନ୍‌ଟା କେମନ ହେଇ ଯାଉଛି ।

ବଂଶୀ ।—( ସ୍ୱଗତ ) ଏ ବେଟାଇଓ ବେଶ୍ ହୟେଚେ—ବେଟା ନିର୍ବୁଦ୍ଧି ହୟେଛିଲ ।—ଏଖନ୍ ଗୁବୁକ୍ ଖେୟେ ବେଟାରୁ

ଏକ୍ଟୁ ବୁଝି ହୁଅନ୍ତେ । ( ପ୍ରକାଶ୍ୟେ ) ଗଙ୍ଗାଧର ! ତୋଙ୍କେ ଯେ ଇନସ୍ପେକ୍ଟର ସେଦିନ ଗୃହୁକେ ମାରିଲେ ତୁଇ ନାଲିସ୍ କରିଲନ୍ତେ ?

ଗଙ୍ଗା ।—ବଂଶୀବାବୁ ! ତୁମେ କେନ ମୋ ସାଙ୍ଗରେ ଲାଗିଅଛ ? ( ଅନ୍ୟତ୍ର ଗମନ ) ।

ଚପ ।—( ଧୂର୍ତ୍ତହାସ୍ୟ ) ଗ୍ରେପ୍ ଗ୍ରେପ୍ ।

ବୈଷ୍ଣ ।—( ସ୍ୱଗତ ) ମୋତେତ କିଛି ଭଲ ଦିଶୁ ନାହିଁ—ସତେ ଠାକୁରେ ଜଜସାହେବଙ୍କ କର୍ଣ୍ଣରେ ବସିବେ—ମୋର ପୁଅ ଖଲାସ ହେବ ? ଯେତେ ଓକିଲଙ୍କଘର ଗଲି ସମସ୍ତେ ବେଶିବେଶି ଟଙ୍କା ଖୋଜିଲେ—ମୁଁ ଏବେ ଦଶ ପନ୍ଦର-ଟଙ୍କା କୁଆଡ଼ୁ ଆଣିବି ? ସେ ମହାଜନ ବେଶ୍ୟଗଟି ଛେର୍କ ତେତୋଟି ଟଙ୍କା ଦେଲି ବୋଲି ଡାକ୍ତର ଆଉ ଇନସ୍ପେକ୍-ଟରକୁ ବୋଧ କରିଦେଲି । ଇନସ୍ପେକ୍ଟରଟା ବଡ଼ ବାହାପିଆ—ଟଙ୍କା ନେଇକରିବ କିଛି କଲା ନାହିଁ—ଗୋ-ଟାଏ ଓକିଲ ଛୁଡ଼ା କରିଥିଲେ ଯାହା ହୋଇଥାନ୍ତା—କଅଣ କରିବ—ମୋର କପାଳ !

ଜଜ ।—( ରାୟ ଲେଖିସାରି ) ଦପ୍ତର—

[ ଦପ୍ତରିର ପ୍ରବେଶ ।

( ଦପ୍ତରି ହାତକୁ ରାୟକାଗଜ ବଢ଼ାଇଦେବାର ଓ କଲମ କାମୁଡ଼ି ଭାବିବାର । )

ଦପ୍ତ ।—( ରାୟକାଗଜ କୁଣ୍ଡ ଓ ସୁତାରେ ଗୁନ୍ଥି ଜଜ ସାହେବଙ୍କ ସମ୍ମୁଖରେ ସ୍ଥାପନ ) ।

ଜଜ ।—( ଟିକିଏ ଭାବି ଦସ୍ତଖତ କରି ତାରିଖ ଦେଇ ) ଫାଶୀ । ( ରାୟ ଓ କାଗଜପତ୍ରାଦି ପେସ୍କାର ଆଡ଼କୁ ବଢ଼ାଇଦେବାର ) ।

ପେସ୍କାର ।—( କାଗଜାଦି ନେଇ ) କୃଷ୍ଣଚରଣ !—

[ କନେଷ୍ଟବଲ ଓ କୃଷ୍ଣଚରଣ ପେସ୍-
କାରଆଡ଼କୁ ଟିକିଏ ଅଗ୍ରସର ହୋଇ-
ଯାଇ ଦଣ୍ଡାୟମାନ ।

ତୁମକୁ ପାର୍ବତୀ ବାଈକୁ ଇଚ୍ଛାପୂର୍ବକ ପ୍ରାଣରେ ମାରପକାଇ-
ଥିବା ଅପରାଧରେ ଫାଶିର ହୁକୁମ ହେଲା ।

କୃଷ୍ଣ ।—( ହୁକୁମ ଶୁଣି କାଷ୍ଠବତ୍ ହୋଇଯିବାର ) ।

କନେ ।—( କୃଷ୍ଣଚରଣର ବାହୁ ଧରି ) ଚଲୋ । ( କୃଷ୍ଣଚରଣଙ୍କୁ
ନେଇ ଯିବାର ) ।

ଲୋକେ ।—( ଗୋଲ୍‌ମଲ୍ କରି ଉଠିବାର ) ।

ଚପ୍ ।—( ଅଗ୍ରସର ହୋଇ ଉଚ୍ଚୈଃସ୍ୱରେ ) ଯାଓ—ଯାଓ ସବ୍—
ଗୋଲମାଲ ମତ୍ କରୋ—ଯାଓ ।

ବୈଷ୍ଣ ।—(ଉଚ୍ଚସ୍ୱରେ ) ମୋ କୃଷ୍ଣରେ—( ଅଚେତନ ହୋଇ
ଭୂତଳେ ପତନ ) ।

ପେସ୍ ।—( ଉଠି ) ଦେଖୋ—ଚପ୍‌ରାସୀ ? କ୍ୟା ହୁଆ ?

ଯବନିକା ପତନ ।

( ନେପଥ୍ୟେ ଗୀତ )

ରାଗିଣୀ ପିଲୁ—ତାଲ ଖେମ୍‌ଟା ।

ଏହି ରେ ଚରମ ଫଳ ଚରମ ସଜା ।
ମଜା ବୋଲି ମକୁଥିଲୁ ଏହି ସେ ମଜା । ପଦ ।
ଘର, ଦ୍ୱାର, ଧନ, ପ୍ରାଣ, ପିତା, ମାତା, ବନ୍ଧୁଜନ,
ଆଉ ସେ ପ୍ରିୟତମା ପ୍ରାଣସମ ଚରମେ ହଜା । ୧ ।
ଯେତେ ମନ ମନସ୍ଥାଧ, ବହି ତେତେ କଲୁ ବାଦ,
ଏବେ ଅବିରତ ଅପବାଦ-ନାଗରା ବଜା । ୨ ।
ମନ କଲେ କେଉଁକାଳେ, ପାପୀ ବରେ ମରପାରେ,
ତାର ପ୍ରତିଫଳ ନଷ୍ଟେ ଯେବେ ହୁଡ଼ିବି ହଜା । ୩ ।

# ପଞ୍ଚମ ଅଭିନୟ ।

## ପ୍ରଥମଦୃଶ୍ୟ—ରସମଞ୍ଜରୀର ଶୟନାଗାର ।

[ ରସମଞ୍ଜରୀ ଶଯ୍ୟୋପରି ଶୟାନା ; ପାର୍ଶ୍ୱେ ଯମୁନା ଓ ନବଦାସୀ ଉପବିଷ୍ଟା । ]

ନବ ।—ଆଜକାଲି ସଂସାରର ଏହି ରୀତି ।—ମା ବାପଙ୍କୁ ମାନୁ ନାହାନ୍ତି ।—ବୋହୂଟା ସଢ଼ିଗଲାଣି ।

ଯମୁନା ।—( ବିକଳସ୍ୱରେ ) ମାତା ! ଦେଲର କି ଆଉ ଅବସ୍ଥା ଅଛି ? ସେ ଏଥର ବଞ୍ଚିବ ? ମାଡ଼ ଖାଇ ତା ଦେହ ଯେପରି ହୋଇଥିଲା ଦେଖିଥିଲ—ଆହା ! ଏକେ ସୁକୁମାରୀ, ତହିଁରେ ପୁଣି ସେ ମାଡ଼—ତା ଉପରେ ମାତା ! ସେ ହାକିମଙ୍କୁ ଯିବାର ଶୁଣିଲା ଦିନରୁ ଜର—ତାପ—କେତେବେଳେ ଚେତନା ଅଛି ତ କେତେବେଳେ ନାହିଁ ।

ନବ ।—( ଚୁଚୁକାର କରି ) ଆହା !

ଯମୁ ।—ଏଣିକି ଖାଇବା ପିଇବାରେ କଷ୍ଟ ପଡ଼ିବ । ସେଇତ ସେ-ଜମାର କରୁଥିଲା—ଯାହା କରୁ ଗୋଟାଏ ଭରସା ଥିଲା—ଆଉ କଣ ସେ ଖଲାସ ହେବ ?—( ଦୀର୍ଘନିଃଶ୍ୱାସ ତ୍ୟାଗ କରି ) ଆଜକାଲି ଅନେକ ଲୋକ ନିଶା ଖାଇ ଦାସୀ ରଖୁଛନ୍ତି—ଆପଣା ଓଜନରେ ଥିଲେ ହେବ ନା ।

ନବ ।—( ଦୀର୍ଘନିଶ୍ୱାସ ତ୍ୟାଗ କରି ) ସେଭଳି ଲୋକ କି ଓଜନରେ ରହିପାରନ୍ତି ?

ଯମୁ ।—ସେ ତ ଏପରି ଅଛି ଯାହାକୁ ଦେଖି କେତେ ଯାଣି ହେଉଚି ! ସଦାବେଳେ ଜର—କଥା କହିବାର ଶକ୍ୟ ନାହିଁ । ( କାନ୍ଦି-ପକାଇ ) ଏ କଣ ବଞ୍ଚିବ ? ମୋତେତ ଯାହା କେବେ ଯରତେ ହଉ ନାହିଁ ! ( ଲୁହ ପୋଛି ) ମାତା ! ଦେଲ ସାଙ୍ଗେ ମୁହିଁ

ସରଗଲଣି—ବେଲ ମୋର ଗଲେ, ମାତା ! ମୂବ ବେଲ ସାଙ୍ଗେ ସାଙ୍ଗେ ଯିବ ।

ହର ।—ଛି ଯମୁନା ! ତୁ ଏମନ୍ତେ ହଉଚୁ କାହାକୁ କହିବ ।

ଉସ ।—( ଧୀରସ୍ୱରେ ) ମା !—ମା !

ଯମୁ ।—ବେଲ ! ମା ଏଠି କାହାନ୍ତି ?

ଉସ ।—ମା—ନାହିଁ—ମୋ—ମା ( ଲୋତକ ବିନ୍ଦୁବାର )—

ଯମୁ ।—( ଲୁହ ପୋଛିଦେଇ ବିକଳରେ ) ବେଲ ! ଛି କାନ୍ଦୁଚ କାହିଁକି ?

ହର ।—( ବିକଳକଣ୍ଠେ ) ବୋହୂ, ଅସ୍ଥି[illegible]ଅ । ଏମନ୍ତ ହେଲେ କଣ ହେବ !

ଉସ ।—ମୋ—ଜୀବନ—ଯାଉ—ନାଇ ।

ହର ।—ଛି ଛି ! ତୁନ ହୁଅ । ଲୁହ ଗଡ଼ାଅ ନା ।

ଯମୁ ।—( କାନ୍ଦନ୍ତି ପ୍ରାୟ ) ମାତା ! ଏହି ଦଦସ୍ତ ଜାବ ଯେନ ମୋ ଜୀବନ—ଯେବେ ଏ କାନ୍ଦା ବୁଡ଼ିବ ମୁଁ ବି ସାଙ୍ଗେ ସାଙ୍ଗେ ବୁଡ଼ିଯିବ ! ( କ୍ରନ୍ଦନ ) ।

ହର ।—ଛି ଯମୁନା ! ସେମେତେ ବାମ୍ଭଣୀପର କାହିଁକି ହଉଚୁ ! ( ଚୂଚୁକାର କର ଗୀତ ) ।

ରାଗିଣୀ ଶଙ୍କରା—ତାଳ ଆଡ଼ାଠେକା ।

ଜସ ପାଇ ବସ୍ତବରେ ଲତା ବଢ଼ା ବାର ଅହା !
ସୁକୁମାରୀ ପ୍ରେମଲତା ଜୀବେ ଯିବ ପାଇ ଅହା ! ପଦ ।
ରମଣୀ ପ୍ରେମ-ଲତିକା, ସୁଅଗ-ବନ-ଜୀବିକା,
ପୁରୁଷ-ଆଦର ବିନା କାହୁଁ ହେବ ପାଉ ଅହା ! ୧ ।

ଉସ ।—ମାତା ! ତୁମ ଜୀବନ ସାର୍ଥ !

ହର ।—ଅହା ! ମୋ ଜୀବନ ତୁମ ସୁଖରେ ପିନା ସାର୍ଥକ—ତୁମେତ ଏମନ୍ତେ ଅଥୟ ହଉଚ—

ରସ ।—ଅଥଯ୍ୟ—ମୋ ଆଶା—ଛିଡ଼ି !

ଦର ।—ଛି ବୋଉ ! ସେମେତେ କାହିଁକି କହୁଚ !

ଯମୁ ।—( ଦୀର୍ଘନିଃଶ୍ୱାସ ତ୍ୟାଗ କରି ) ମାତା ! ସେହିପରି ଟିକିଏ ଗୀତ ଗାଅ—ତୁମ ଗୀତ ଶୁଣି ଦେଲି ଟିକିଏ ନିଶ୍ୱାସ ମାରିଲି ।

ଦର ।—କଥଣ ଗାଇବି ଯମୁନା ! ମୋ ମନ ଖାଲି ଖାଇ ହୋଇ ଯାଉଚି ! ( ଗୀତ )

ରାଗିଣୀ ବସନ୍ତ—ତାଲ ଅଡ଼ାଠେକା ।

ବଢ଼ାଇଥିଲି ଅଦପ ସାଧ ଶରଧାରେ ଭେତେ ।
ସ୍ୱପ୍ନେ ଶୁଖି ସେ ଗଛ ଗଲା ଆଶା ଥିଲା ଯେତେ । ପଦ ।
ଯେ ଦନ ରୋପଣ କଲି, ଦାତେ ଅଣି ଲଗାଇଲି,
କରେ ବଧି ବଡ଼ମନା ଆଶାକୁ ନସ୍ଥିଲା ଏତେ । ୧ ।

ରସ ।—ମୁ—କଣ—ଦେବ—ମାତା !—ମୋ—ଜୀବନ ତୁମକୁ ଦେଲି ।

ଦର ।—ମୋର ସେଇଯା ଡର !

ଯମୁ ।—ବେଲ ! ଜୀବନଟା ଯେ ତାଙ୍କୁ ଦେଲି—ଥଯ୍ୟ ହେଲେ ହବ ନା—ଅଥଯ୍ୟ ଜୀବନ ନେଇ ସେ କଣ କରିବେ ?

ରସ ।—ମୁଁ—ଥଯ୍ୟ—ମଲେ—ମା !—

[ କନକଲତାର ପ୍ରବେଶ ।

କନ ।—( ରସମଞ୍ଜରୀ ପାର୍ଶ୍ୱରେ ବସି ) ମାତା ! ବୋଦୂର ଅବସ୍ଥା ଦେଖୁଚ—ମୁଁ ଏବେ ଘରଅକ୍ତ୍ର ହଟହଟା ହେଲି !

ଦର ।—ତୁମେ ଏତେ ଖବର କାହିଁକି—ସଦରକୁ ଭଲବାର୍ତ୍ତା ଅସବ—ଟିକିଏ ଥଯ୍ୟ ହୁଅ ।

କନ ।—ମାତା ! ମୁଁ ସରଗଲିଣି । (କାନ୍ଦି) ମୁଁ ଆଜ ସ୍ୱପ୍ନ ଦେଖିଲି ମୋ ଦୁଃଖୀଧନକୁ ଫାଶିର ହୁକୁମ ହୋଇଚ ।

ହର —(ଜିହ୍ୱା ଦଂଶନ କରି) ଆହା ! ସ୍ୱପନ କଥାଟା ସତ ମଣିର ?
—ଛି ! ତାହା ନାହିଁ ।

ଜନ ।—ଆଉ କାନ୍ଦିଲେ କଣ ହେବ—ପରସ୍ପରୁ ଛୁଟିଗଲେ ଆଣି ବାଷ୍ପ ଦେଲି—ମୋ କପାଳ ! ( କ୍ରନ୍ଦନ ) ।

[ ଅଜାଦର ପ୍ରବେଶ

ଯମୁ ।—ହେଲ ଅଜାଦ ଆସିଲାଣି—କହରେ ଖବର କଣ ?

ଅଜା ।—( କ୍ରନ୍ଦନ ) ।

ଜନ ।—କରେ କାନ୍ଦୁଚୁ କାହିଁକି—( କ୍ରନ୍ଦନସ୍ୱରେ ) କହ ରେ ମଥୁରା-ବାର୍ତ୍ତା !

ରସ ।—( ଉଚ୍ଚ ଦୀର୍ଘନିଶ୍ୱାସ ତ୍ୟାଗ କରି ) ମା !

ଅଜା ।—(କାନ୍ଦି)ରାଜ ସାଆନ୍ତଙ୍କୁ ଫାଶିର ହୁକୁମ ହେଲା—ଆଠଦିନ ଗଲେ ଫାଶି ଯାଇବେ । ( ଉଚ୍ଚସ୍ୱରେ କ୍ରନ୍ଦନ । )

ଜନ ।—କରେ କଥଣ କହୁଚୁ ( ଅଚେତନ ହୋଇ ତଳେ ପଡ଼ିବାର ) ।

ରସ ।—ମାଆ !—( ମୁଣ୍ଡକୁ ହାତ ଧୁଠାଉ ହାତ ତଳେ ପଡ଼ି-ଯିବାର ) ।

ହର ।—(କ୍ରନ୍ଦନସ୍ୱରେ)ମଥୁରା ବାର୍ତ୍ତା ଅଇଲା—ବଜ୍ରାଘାତ ସଧା ମଲା !

ଯମୁ ।—( ଉଚ୍ଚ କ୍ରନ୍ଦନସ୍ୱରେ ) ଅଜାଦ ! ପାଣି ଆଣ ରେ— ଅଜାଦ ! ( କ୍ରନ୍ଦନ ) ।

[ ଅଜାଦର ଦ୍ରୁତ ରଙ୍ଗଭୂମିରୁ ପ୍ରସ୍ଥାନ ।

( ଯବନିକାପତନ )

( ନେପଥ୍ୟ ଗୀତ )

ରାମପ୍ରସାଦୀସ୍ୱର । ତାଳ ଏକତାଲି ।

ଚାଲ ମନ ଭବ ଛାଡ଼ି ।

ଛାଡ଼ି ଚାଲ ରେ ନରକପୁରୀ । ପଦ ।

ଥିଲେ ଲୋକେ ପୂର୍ବକାଳେ, ଧର୍ମପଥେ ସ୍ୱବଶରେ,

ଏବେ ଅଧର୍ମରୂପୀ ଦାନବ ଦେଖାଣି ରେ ଭବ ପାର । ୧ ।
ମୋକ୍ଷେ ଯଦ ଅଛୁ ଆଶ, ତେବେ ମ କର ରେ ବାସ,
ଛାଡ଼ ବନ୍ଧନ ବନ୍ଧୁଙ୍କୁ ଯାଇ ପାଳବନ୍ଧୁ ଦ୍ୱାର ଦ୍ୱାର । ୨ ।
ଘୋର ଦେଖ କଳିକାଳ, ନାଶିଯିବ ଏ ସଂସାର,
ଛାଣି ଯିବୁ ଭୁଞ୍ଜ କଳିକାଳ ଭକ୍ତି-ଯୋଗେ ଧନ ସାର । ୩ ।

ସମ୍ପୂର୍ଣ୍ଣ ।

---